**ଛନ୍ଦ ବିଷୟରେ ସ୍ୱଳ୍ପଜ୍ଞାନ**

**================**

ଅନ୍ୟ ପ୍ରାୟ ସବୁ ରାଜ୍ୟରେ ପାଠ୍ୟକ୍ରମରେ ଛନ୍ଦଃଶାସ୍ତ୍ର ଅଛି । ଏପରିକି ଭାରତ ବାହାରେ ମଧ୍ୟ, ନେପାଳରେ ମଧ୍ୟ ।

କାଁ ଭାଁ କିଛି ରାଜ୍ୟରେ ସେ ପାଠ ନାହିଁ । ଏଥିରେ board university ସବୁ କେତେ ଦାୟୀ କି ସେହି ସବୁ ସ୍ଥାନର କବିମାନଙ୍କ ଛନ୍ଦ ପ୍ରତି ଉଦାସୀନତା ବେଶି ଦାୟୀ ସେ ଚର୍ଚ୍ଚା କରୁ ନାହଁ । କେତେକ ଅଞ୍ଚଳରେ ଛନ୍ଦଃଶାସ୍ତ୍ର ବିଷୟରେ ପଢା ହୁଏ ନାହିଁ । ଏପରି କି ଭାରତୀୟ ଛନ୍ଦଃଶାସ୍ତ୍ରର ରଚୟିତା ଆଚାର୍ଯ୍ୟ ପିଙ୍ଗଳଙ୍କ ନାମ ସୁଦ୍ଧା ସେଠା ଛାତ୍ର କଣ ଅଧେ ଶିକ୍ଷକ ଓ ଅଧ୍ୟାପକ ବି ଶୁଣି ନାହାନ୍ତି । କାରଣ ଯାହା ବି ହେଉ ପାଠଟା

ପାଠ୍ୟକ୍ରମରେ ନାହିଁ ମାନେ ନାହିଁ - ସେ କଥା ଏତିକିରେ ସରିଲା ।

କିନ୍ତୁ ମୋତେ ଲାଗେ, ଛନ୍ଦ ଶବ୍ଦଟା କାହିଁକି ସମସ୍ତଙ୍କୁ ଭଲ ଲାଗେ - ବିଶେଷତଃ କବିମାନଙ୍କୁ । ସେ ବିଷୟରେ କିଛି ଜାଣିବାକୁ ଇଚ୍ଛୁକ ଅନେକ ।  ସେମାନେ ଜାଣିବେ କାହାଠୁ ? ଆମ ପରି ଅଞ୍ଚଳରେ ଛନ୍ଦର ଜ୍ଞାତା ବିରଳ । ଛନ୍ଦଃଶିକ୍ଷା ଦେଲା ପରି ବହି ଦୁଷ୍ପ୍ରାପ୍ୟ ।

ସରଳ ଜିଜ୍ଞାସୁ ତରୁଣତରୁଣୀ କିଏ ବୟସ୍କ ବା ଛନ୍ଦର ଜ୍ଞାତା ପରି କଣ ସବୁ ଅବୋଧ ଭାଷା କହୁ ଥିବା ପରି ଲୋକ ମିଳି ଗଲେ ତ ତାଙ୍କ କଥା ଶୁଣୁଛନ୍ତି । ସେ ଅସ୍ପଷ୍ଟ ଦୁର୍ବୋଧ ସଂଳାପ ଶୁଣି ବୁଝି ହୁଏ ନାହିଁ । ଯାହା ଶୁଣିଲେ ତାକୁ ନିଜେ ଅନୁଶୀଳନ କରିବାକୁ ଯାଇ ନିଜ ନିଜର ମନୋଦଶାନୁସାର କିଛି ଏକ ଧାରଣା ନିଜ ପାଇଁ

ଗଢି ବସନ୍ତି । ସେଥିରୁ କିଏ କେବେ ଅନ୍ୟକୁ ଜ୍ଞାନ ବି ଦେଇ ଦିଅନ୍ତି - ନିଜ ବୁଝିବା ପ୍ରକାରର । ପରମ୍ପରା ଲାଗି ରହିଛି ।

ଲକ୍ଷ୍ୟ କରିବା କଥା ଯେ ଛନ୍ଦ ବିଷୟରେ ବହୁତ ବିଭ୍ରାନ୍ତିକର ଧାରଣା ସେହିମାନେ ବିତରଣ କରନ୍ତି ଯେଉଁମାନେ ଜୀବନରେ କୌଣସି ଛନ୍ଦୋଗ୍ରନ୍ଥ ପଢି ନାହାନ୍ତି ଓ ଛନ୍ଦର ସର୍ବନିମ୍ନ ଆଭିଧାନିକ ଅର୍ଥବୋଧ ହିଁ ଅଛି ତାଙ୍କ ପାଖରେ ଯାହା ଅପୂର୍ଣ୍ଣ ଜ୍ଞାନ ଦିଏ । କିନ୍ତୁ ବୈଷୟିକ ପାଠ ସେପରି ହୁଏ ନାହିଁ ।

ଯେପରି ଏକ କ୍ରିୟାର ଫଳସ୍ୱରୂପ ଜାତ ଅନ୍ୟ କ୍ରିୟା ହେଲା ପ୍ରତିକ୍ରିୟା - ଏ କଥା ତ ଅଭିଧାନ କହେ ଓ ଅଭିଧାନ ସତ୍ୟ କହେ କିନ୍ତୁ ରସାୟନ ବିଦ୍ୟାରେ ପ୍ରତିକ୍ରିୟା (reaction) ଏକ ବୈଷୟିକ କଥା । ଜଣେ ଗାଳି

ଦେଲାରୁ ଅନ୍ୟ ତା ହାତ ଉଠେଇଲା - chemistryରେ ଏହା reaction ନୁହେଁ ।

ଅନ୍ୟ ଉଦାହରଣ - ଯୋଗ ମାନେ ଯୋଡିବା ଇତ୍ୟାଦି - ଏହା ଆଭିଧାନିକ ଜ୍ଞାନ, ନିର୍ଭ୍ରମ ଜ୍ଞାନ ମଧ୍ୟ । କିନ୍ତୁ ପତଞ୍ଜଳିଙ୍କ ଯୋଗସୂତ୍ରରେ ଯୋଗ ଅର୍ଥ ୪+୬=୧୦, ଏ ସବୁ ଗଣିତ ନୁହେଁ । ଯେ ସେଥିରେ ପ୍ରବିଷ୍ଟ ସେ ଜାଣନ୍ତି ।

ରସାୟନବିଦ୍ୟାରେ ପ୍ରତିକ୍ରିୟା ପରି, ପାତଞ୍ଜଳ ଯୋଗସୂତ୍ରରେ ଯୋଗ ପରି ଛନ୍ଦଃଶାସ୍ତ୍ରର ଛନ୍ଦ । ଶାସ୍ତ୍ର ନ ପଢ଼ି ବା ଜାଣିଥିବା ଲୋକଠୁ ନ ବୁଝି ଛନ୍ଦ ଶିଖି ହୁଏ ନାହିଁ । ତେବେ ଏତେ କଥା ଏ ଛନ୍ଦୋଜ୍ଞାନର ଅଜ୍ଞଙ୍କ ବା ଅଜ୍ଞ ବିତରକମାନେ ଶୁଣିଲେ ତ । ସବୁ ପୂର୍ବବଦ୍ଧ ମିଥ୍ୟା ଅବଧାରଣାମାନ (preconceived false

notions) ଧରି ବସିଛନ୍ତି । ତଥାପି ଛନ୍ଦ ବିଷୟରେ ଜ୍ଞାନ ବି ବାଣ୍ଟୁଛନ୍ତି । କହିଲେ ଅପ୍ରୀତି ହୁଏ, ହେବ । କହିବା ମାତ୍ରେ ବୃଥାତର୍କ ସାର ।

ଏହି ଅଜ୍ଞଙ୍କ ମାନେ ନିଜ ନିଜ ବୋଧ ବା ଅର୍ଦ୍ଧବୋଧ ଅନୁଯାୟୀ ଜ୍ଞାନ ବାଣ୍ଟୁଛନ୍ତି, ବାଣ୍ଟି ଚାଲିବେ । ଛନ୍ଦ ବୁଝେଇଲା ପରି ବହି ଲେଖୁଛନ୍ତି, ଲେଖୁ ଥିବେ । ସେମାନଙ୍କୁ ଏଥିରୁ ନିବୃତ୍ତ କରି ହେବ ନାହିଁ ।

ଏହି ସ୍ୱଘୋଷିତ ଛନ୍ଦୋଜ୍ଞମାନଙ୍କରୁ ଅନେକଙ୍କୁ ମୁଁ ତାଙ୍କ କୃତ ବହିରୁ ଚିହ୍ନେ । କାରଣ ବହୁତ ବହି ମାଗଣାରେ ମିଳି ଯାଉଛି ଆଜିର ଅନ୍ତର୍ଜାଲରେ । ବ୍ୟକ୍ତିଗତ ଭାବେ କେହି ମୋର ଜଣାଶୁଣା ନୁହନ୍ତି । କେହି ମୋର ମିତ୍ର ନୁହନ୍ତି । କେହି ଶତ୍ରୁ ବି ନୁହନ୍ତି ।

ସେମାନଙ୍କର ଉଦ୍ଦେଶ୍ୟ ମହତ୍ ଥାଇ ପାରେ - ମୋର ସନ୍ଦେହ କରିବାରେ ପ୍ରୟୋଜନ ନାହିଁ I କିନ୍ତୁ ଯେଉଁ ବିଦ୍ୟା ନିଜେ ଭଲ କରି ଆୟତ୍ତ କରି ନାହାନ୍ତି ସେହି ପାଠ ନ ବାଣ୍ଟିବା ଭଲ I ପାଠଟା ପୂରା ପଢି କି ଜାଣି ପାରି ନାହାନ୍ତି ବୋଲି ଜାଣି ପାରୁ ନ ଥିବେ I ଭାବୁ ଥିବେ ସବୁ ହେଇ ଗଲା I ଏବେ ଲେଖିବା I ଯେଉଁ ପରି ସ୍ଥିତିରେ ହେଉ ଅଳ୍ପ ଜାଣି ବହୁତ ଲେଖୁଛନ୍ତି I ଲେଖାରେ ଦୋଷ ରହୁଛି I ଅସ୍ୱଷ୍ଟତା ଓ ବିଭ୍ରମ ବି ବହୁତ ରହୁଛି I

ଏଠାରେ କାହା ନାମ ପ୍ରକାଶ ନ କରିବା ଭଲ I ତେବେ ଅପର୍ଣ୍ଣା ପଣ୍ଡା ବୋଲି ଜଣେ ଲେଖିକାଙ୍କ କଥା କହୁଛି I ସେ ତାଙ୍କ ବହିରେ ଛନ୍ଦ ଶିଖେଇବା ପରି କିଛି ଲେଖି ନାହାନ୍ତି I ଲେଖିଛନ୍ତି କିଛି ଓଡିଆ କବି ଯିଏ ଛନ୍ଦରେ କିଛି ଲେଖିଛନ୍ତି ସେହି ମାନଙ୍କ ଛନ୍ଦଃକୃତି

ବିଷୟରେ । ସେହି ପ୍ରସଙ୍ଗରେ ଛନ୍ଦ ବିଷୟରେ ଯାହା ଯେଉଁଠି ଲେଖିଛନ୍ତି ସେଥିରେ କିଛି ତ୍ରୁଟି ନାହି । ଅସ୍ପଷ୍ଟତା ନାହିଁ କି ବିଭ୍ରମ (confusion) ବି ନାହିଁ ।

ସମସ୍ତଙ୍କର ସବୁ ବହି ଦେଖି ଦେଇଛି ତାହା ମଧ୍ଯ ମୁଁ କହୁ ନାହିଁ । ସବୁ ପାଇବା କି ପଢିବା ମୋ ପକ୍ଷରେ ସମ୍ଭବ ବି ନୁହେଁ । କିନ୍ତୁ ଅବଶିଷ୍ଟ ଯେତିକି ବହି ଦେଖିଛି ଓ ପଢିଛି, ଆଜିର ସଂବାଦପତ୍ର ଭାଷାରେ ସେଗୁଡିକ ... ଊନୋଧିକ ମାତ୍ରାରେ ସବୁ ଡକ ଫ୍ଲପ୍ । ଦୁଃଖଦ କିନ୍ତୁ ସତ୍ୟ ।

**ବିନୀତ ଲଲାଟେନ୍ଦୁ କବି**

**202408212118**